ଜନଶିକ୍ଷା ଗ୍ରନ୍ଥମାଳା

# କୃମିରୋଗର କାହାଣୀ

ଡକ୍ଟର୍ ଶିଶୁଶଙ୍କର ମିଶ୍ର



# ରକ୍ତଖିଆ ଅଙ୍କୁଶ କୃମି

## ( ୧ )

ଶୀତ ଦିନ ସକାଳ। ଗାଁର ଚଉପାଢ଼ି ପାଖରେ କେତେଜଣ ବସି ଖରା ପୁଉଁଥାନ୍ତି। ଚାଷବାସ କଥା ପଡୁଥାଏ। ବାସୁ କହିଲା– "ବୁଝିଲ ନନା, ଯଦୁ ଭାଇ ଗାଁରେ ନାହାନ୍ତି ନା ଗାଁଟା ଖାଲି ଖାଲି ଲାଗୁଚି। ସେ ତାଙ୍କ ଭାରିଯାଙ୍କୁ ଡାକ୍ତରକୁ ଦେଖେଇବାକୁ ପୁରୀ ନେଇଥିଲେ। କ'ଣ ହେଲା କେଜାଣି ?"

ଏ ସମୟରେ ଯଦୁ ମହାନ୍ତି, ତାଙ୍କ ଭାରିଯା ସୀତା ଏବଂ ଶଳା ନାରଣ ତିନିହେଁ ବସ୍‌ରୁ ଓହ୍ଲେଇ ଗାଁରେ ପଶିଲେ। ଯଦୁ ମହାନ୍ତିଙ୍କର ମନ ଖୁସି ଥିବା ଜଣାଯାଉଥାଏ।

ଯଦୁ ମହାନ୍ତିଙ୍କୁ ଦେଖି ବାସୁ ଓ ଚଇତନ ତାଙ୍କୁ ଜୁହାର କଲେ। ତା'ପରେ ଭାଉଜ ସୀତାଙ୍କୁ ଜୁହାର କଲେ। ସେମାନଙ୍କ ହାତରୁ ଜିନିଷପତ୍ର ଧରିନେଇ ଘରେ ଛାଡ଼ିଦେଇ ଆସିଲେ।

ଯଦୁ ମହାନ୍ତି କହିଲେ– "ବୁଝିଲୁ ବାସୁ, ଅଳପକେ ତୋ ଭାଉଜଟା ବଞ୍ଚିଗଲା। ଠାକୁରଙ୍କ ଦୟା। ଦୁଇ ବୋତଲ ରକ୍ତ ତା' ଦେହରେ ଦିଆଗଲା ପରା !"

ବାସୁ କହିଲା– "ଭାଇ, ତୁମେ ଆଗେ ଗାଧୁଆ ପାଧୁଆ ସାରି କ'ଣ ଟିକିଏ ଖାଅ। ତା'ପରେ ଟିକିଏ ହାଲିଆ ମାରି ସାରି ଚଉପାଢ଼ିକୁ ଆସିବ। ଭାଉଜ ଭଲହେଇଗଲେ ଏଇଟା ଗୋଟେ ଖୁସି ଖବର। ତାଙ୍କ ପାଇଁ ଆମେ ସଭିଁଏ ଚିନ୍ତାରେ ଥିଲୁ।"

ଯଦୁ ମହାନ୍ତି କହିଲେ– ''ହଉ-ହଉ, ଆମ ଭିତରେ ଏମିତି ଭଲଭାବ ଥାଉ। ସଞ୍ଜରେ ସମସ୍ତେ ଏକାଠି ବସିବା। ସେତିକିବେଳେ ସବୁ କଥା କହିବି।''



ବାସୁ ପଳାଇ ଯିବାକୁ ବାହାରିଥାଏ। ଯଦୁ ମହାନ୍ତି ପଛରୁ ଡାକି କହିଲେ, ''ଆରେ ବାସୁ, ଭୁଲିଯାଉଚି। ଆଜି ଚାରିଟାବେଳକୁ ଟିକେ ଆସିବୁ। ଶଗଡ଼ଟା ନେଇ ଯିବା, ବରପାଲି ପାଇଖାନାଟାଏ କିଣି ଆଣିବା।''

ବାସୁ କହିଲା– ''କ'ଣ ଯଦୁଭାଇ, ପୁରୀ ସହରରେ ଦଶଟା ଦିନ ରହୁ ରହୁ ତୁମର ଅଭ୍ୟାସ ବଦଳିଗଲା ? ପାଇଖାନାଟେ ନହେଲେ କ'ଣ ଚଳିବ ନାହିଁ? ଆମର ବିଲ ପଡ଼ିଆ, ଏତେ ଖୋଲା ଜାଗା ଥାଉ ଥାଉ ଝାଡ଼ା ଯିବାକୁ ପାଇଖାନାଟାଏ କ'ଣ ହବ ? ତା'ଛଡ଼ା ଖୋଲା ଜାଗାରେ ପାଇଖାନା ବସିବାକୁ କେଡ଼େ ଭଲଲାଗେ। ଗୋଟେ ନିବୁଜ ଜାଗାରେ ବସିବାକୁ କ'ଣ ସେମିତି ଭଲଲାଗିବ ? ମତେ ତ ରୁନ୍ଧି ଲାଗିବ।''

ବାସୁର କଥା ଶୁଣି ଯଦୁ ମହାନ୍ତି ଟିକିଏ ମୁରୁକି ହସିଲେ। କହିଲେ– "ମୁଁ ମଧ୍ୟ ତୋରି ଭଳିଆ ଭାବୁଥିଲି। ପରେ ମୋର ଭୁଲ ବୁଝିପାରିଲି। ହଉ ଟିକେ ଆସିବୁ, ଆଜି ଯାଇ ଆଗେ ପାଇଖାନାଟେ ନେଇଆସିବା। ତା'ପରେ ସଞ୍ଜବେଳର ବଇଠକିରେ ସବୁ କଥା କହିବି।"

## ( ୨ )

ସଞ୍ଜ ସମୟରେ ଚଉପାଢ଼ିରେ ଗାଁର ଲୋକମାନେ ଏକାଠି ବସିଥାନ୍ତି। ଯଦୁ ମହାନ୍ତି ଚଉପାଢ଼ିକୁ ଆସି ବସିଲେ। ଶାମ ଭାଇନା ପଚାରିଲେ– "ଆରେ ଯଦୁ, ବୋହୂର ଦେହ କେମିତି ଅଛି?"



ଯଦୁ ମହାନ୍ତି କହିଲେ, "ଆଗଠାରୁ ଅନେକ ଭଲ ଅଛି। ଆଉ କେତେଟା ଦିନ ଔଷଧ ଖାଇଲେ ପୂରା ଭଲହେଇଯିବ।"

ଶ୍ୟାମ ଭାଇନା କହିଲେ, ''ପୁରୀ ଗଲାବେଳେ ଦେହଟା ତ ଖୁବ୍ ଖରାପ ଥିଲା। ଜାଣ ଗୋଟାଏ ବଡ଼ ବିପଦ କଟିଲା।''

ଯଦୁ ମହାନ୍ତି କହିଲେ, ''ବିପଦ ପରି ବିପଦ ଭାଇନା! ଯାହା କହନ୍ତି ନାକ ଦଣ୍ଡାରେ ପ୍ରାଣ ଥିଲା। ପାହୁଣ୍ଡେ ଚାଲିଲାବେଳକୁ ଧଇଁ ପେଲୁଥିଲା। ଦେହ ମୁହଁ ଶେତାପଡ଼ିଯାଇଥିଲା। ଗୋଡ଼ ଦି'ଟା ଫୁଲି ଗୋଦର ଗୋଡ଼ ଭଳି ଦିଶୁଥାଏ। ସେ ଫୁଲାଗୋଡରେ ଟିପ ମାରିଲେ ଦବିଯାଉଥାଏ। ଡାକ୍ତର ଦେଖିଲା ମାତ୍ରେ କହିଲେ – ରୋଗୀର ଦେହରୁ ରକ୍ତ କମିଯାଇଚି। ରୋଗୀକୁ ପରୀକ୍ଷାକରି ଡାକ୍ତରଖାନାରେ ରଖାଇଦେଲେ। ତାପରେ ଔଷଧ ଲେଖିଦେଲେ। କହିଲେ – ''ଏ ଔଷଧ ଏବେ ଖାଇବାକୁ ଦିଅ। ରୋଗୀର ରକ୍ତ, ମଳ, ମୂତ୍ର ଡାକ୍ତରଖାନାରେ ପରୀକ୍ଷା କରାଇଦିଅ। ସେସବୁ ପରୀକ୍ଷା ହେଲା ପରେ ରୋଗର ଅସଲ କାରଣ ଜଣାଯିବ।''

ବାସୁ କହିଲା – ''ବଡ଼ଭାଇ, ତୁମର ଚଳଣିତ ଭଲ। ଖାଇବା ପିଇବା ବି ଭଲ କର। ତେବେ ଭାଉଜଙ୍କ ଦେହରେ ରକ୍ତ କାହିଁକି କମିଗଲା?''

ମହାନ୍ତିଏ କହିଲେ, ଶୁଣ, କହୁଚି। ଡାକ୍ତର କହିଲା ଭଳି ରୋଗୀର ମଳ, ମୂତ୍ର, ରକ୍ତ ପରୀକ୍ଷା ହେଲା। ସେ କାଗଜ ନେଇ ଡାକ୍ତରଙ୍କୁ ଦେଖାଇଲି। ଡାକ୍ତରବାବୁ ସେ କାଗଜ ସବୁ ପଢ଼ିଲେ। କହିଲେ – ରୋଗୀର ପେଟରେ ଅଙ୍କୁଶ କୃମି ଅଛି। ତାହାରି ଯୋଗୁ ଏ ରୋଗ ହେଇଚି।

ମୁଁ ପଚାରିଲି – ''ବାବୁ, ଗୋଡ଼ ଫୁଲିବା, ଦେହ ଶେତା ପଡ଼ିବା, ମୁଣ୍ଡ ବୁଲାଇବା, ଧଇଁ ପେଲିବା ଏସବୁ କାହିଁକି ହେଲା? ଏସବୁ ମଧ କ'ଣ ଅଙ୍କୁଶ କୃମି ଯୋଗୁ ହେଇଚି?''

ଡାକ୍ତରବାବୁ କହିଲେ – ''ରୋଗୀର ଦେହରୁ ରକ୍ତ କମିଗଲା ତ – ସେଇଥିପାଇଁ ଏପରି ହେଉଛି।''

ମୁଁ ପଚାରିଲି – ''ବାବୁ ଦେହରେ କୋଉଠି ଖଣ୍ଡିଆଖାବରା ହେଇ ରକ୍ତ ଯାଇନି। ତେବେ ରକ୍ତ କମିଲା କେମିତି ?''



ଡାକ୍ତରବାବୁ କହିଲେ – ''ଅଙ୍କୁଶ କୃମି ଗୁଡାକ ତାଙ୍କ ଦେହରୁ ବହୁତ ରକ୍ତ ଟାଣିନେଇଛନ୍ତି। ତାଙ୍କର ଝାଡ଼ା ପରୀକ୍ଷାରୁ ଜଣାପଡ଼ିଛି ଯେ ତାଙ୍କ ପେଟର ଅନ୍ତନଳୀରେ ଅଙ୍କୁଶ କୃମି ଭରି ରହିଚନ୍ତି। ଏହି କୃମିଗୁଡାକ ମଣିଷ ଦେହରୁ ରକ୍ତ ଖାଇ ବଞ୍ଚନ୍ତି।''

ମୁଁ ପଚାରିଲି, ''ବାବୁ, ତେବେ କ'ଣ କରିବାକୁ ହେବ ? ରୋଗୀ କିପରି ଭଲ ହେବ ଓ ଟିକିଏ ବଳ ପାଇବ ?''

ଡାକ୍ତରବାବୁ କହିଲେ – ''ରୋଗୀ ଦେହରୁ ବହୁତ ରକ୍ତ କମିଯାଇଛି। ତାଙ୍କୁ ଆଗ ଦୁଇ ବୋତଲ ରକ୍ତ ଦେଇଦେବା। ତାହା ସହିତ ଦେହରେ ରକ୍ତ ତିଆରି ହେବା ପାଇଁ ଦରକାରୀ ଔଷଧ ମଧ ଖାଇବାକୁ ଦେବା। ଏହାଛଡ଼ା ଔଷଧ ଦେଇ ଦେହ

ଭିତରେ ଥିବା କୃମିଗୁଡ଼ାକୁ ମାରିବା। ଏଭଳି କଲେ କିଛି ଦିନରେ ରୋଗୀ ଭଲହେଇଯିବ।''

ତା'ପରେ ଡାକ୍ତରବାବୁ ରୋଗୀପାଇଁ ଔଷଧ ଲେଖିଦେଲେ। ସେଠାରେ ଥିବା ନର୍ସକୁ କେଉଁ ଔଷଧ କିଭଳି ଭାବରେ ଦିଆଯିବ ବତାଇଦେଲେ।

ରୋଗୀକୁ ରକ୍ତ ଦେବା ପାଇଁ ବ୍ୟବସ୍ଥା କରିବାକୁ କହିଲେ।

## ( ୩ )

ଡାକ୍ତରବାବୁ ଦେଇଥିବା ଚିଠା ଧରି ମୁଁ ଔଷଧ ଦୋକାନକୁ ଗଲି। ଦୋକାନୀ ସେ ଚିଠା ପଢି ଔଷଧ ଦେଲେ। ସବୁ ଔଷଧ କିଣିସାରିବା ପରେ ମୁଁ ପଚାରିଲି– ''ବାବୁ, ରକ୍ତ ଦି'ଟା ବୋତଲ ତ ଦେଲେନି ?''

ଏହା ' ଶୁଣି ଔଷଧ ଦୋକାନୀ ଟିକେ ମୁରୁକି ହସିଲା। କହିଲା – ''ଔଷଧ ଦୋକାନରେ ରକ୍ତ ମିଳେନାହିଁ। ଡାକ୍ତରଖାନାରେ ରକ୍ତ ଭଣ୍ଡାର ଅଛି, ସେଇଠି ମିଳିବ। ସେଠାକୁ ଯାଆନ୍ତୁ।''

''ଆମେତ ମଫସଲର ଲୋକ– ଆମେ ଏ ରକ୍ତ କିଣାବିକା କଥା କ'ଣ ଜାଣିଛେ ? ଏ କଥା ନଜାଣିଥିବାରୁ ଦୋକାନୀ ପାଖରେ ଟିକିଏ ଲାଜରା ହେଲି। ସେଠୁ ଡାକ୍ତରବାବୁଙ୍କ ପାଖକୁ ଯାଇ ରକ୍ତ ଭଣ୍ଡାର କେଉଁଠି ପଚାରିଲି।''

ଡାକ୍ତରବାବୁ କହିଲେ, ''ଏଇ ପିଅନ୍‌ଟି ଆମ ଡାକ୍ତରଖାନାର ରକ୍ତଭଣ୍ଡାରକୁ ତୁମ ସ୍ତ୍ରୀଙ୍କର ରକ୍ତରୁ ଟିକିଏ ନେଇ ଯିବ। ତୁମେ ଆଉ ତୁମର ଯେଉଁ ବନ୍ଧୁମାନେ ଆସିଚନ୍ତି, ତା ସାଙ୍ଗରେ ଯାଆନ୍ତୁ।

ଯେଉଁମାନଙ୍କର ରକ୍ତ ତୁମ ସ୍ତ୍ରୀଙ୍କର ରକ୍ତ ସାଙ୍ଗରେ ମିଶିବ ସେମାନେ ବୋତଲେ ଲେଖାଏଁ ରକ୍ତ ଦେବେ।"

ଡାକ୍ତରବାବୁଙ୍କ କଥା ଶୁଣି ମୁଁ ଚିନ୍ତାରେ ପଡ଼ିଲି। ଜଣେ ବନ୍ଧୁବ ବୋଲି ଆଉ ଦି'ଜଣଙ୍କ ଠାରୁ ରକ୍ତ ଟଣା ହୋଇ ଦିଆହେବ–



ଏ କି କଥା? କେତେ କଷ୍ଟରେ ଦିହରେ ରକ୍ତ ଟୋପେ ତିଆରି ହେଉଚି। ଯିଏ ରକ୍ତ ଦେବ ତାକୁ ତ କେତେ ଦୁର୍ବଳ ଲାଗିବ! ରକ୍ତ ଦେଲାବେଳେ କଷ୍ଟ ବି ହେବ। କିଏ କାହିଁକି ଏ ଝମେଲାରେ ପଶିବ?

ରକ୍ତଭଣ୍ଡାରର ଡାକ୍ତର ମୋ ଭାରିଯାର ରକ୍ତ ପରୀକ୍ଷା କଲେ। ତାପରେ ମୋର, ମୋ ଶଳା ନାରଣର ଓ ତା' ସାଙ୍ଗ ନବୀନର ରକ୍ତ ପରୀକ୍ଷାକଲେ। କହିଲେ– ମୋ ରକ୍ତ ମିଶୁ ନାହିଁ– ନାରଣ ଓ ନବୀନର ରକ୍ତ ମିଶୁଚି।

ଏଇ ଦୁଇଜଣଙ୍କଠାରୁ ବୋତଲେ କରି 'ଦୁଇ ବୋତଲ ରକ୍ତ ନେବା ଠିକ୍ ହେଲା। ମତେ ଭୟଲାଗୁଥାଏ। ଏଣେ ଭାରିଯା ରୋଗରେ ପଡ଼ିଛି। ତା ପାଇଁ ରକ୍ତ ଦେଇ ଏମାନେ କେହି ରୋଗରେ ପଡ଼ିଲେ ମୁଁ ସବୁଆଡୁ ଅସୁବିଧାରେ ପଡ଼ିବି। ମନେ ମନେ ଠାକୁରଙ୍କୁ ଡାକୁଥାଏ ଆଉ ଅଧିକ ବିପଦରେ ନପକାଇବାକୁ।

ପ୍ରାୟ ଘଣ୍ଟାଏ ପରେ ଦୁଇଜଣଯାକ ରକ୍ତଭଣ୍ଡାର ଭିତରୁ ଚାଲି ଚାଲି ଆସିଲେ। ମୁଁ ଛାନିଆ ହୋଇ ପଚାରିଲି– ''କିରେ, ରକ୍ତ ଦେଲ ତ ?''

ଦୁଇଜଣଯାକ ହସି ହସି କହିଲେ – ''ହଁ ଦେଲୁ।''

ମୁଁ ପଚାରିଲି ''ଆରେ ବୋତଲେ ଲେଖାଏଁ ରକ୍ତ ଦେଲ– ଦେହ ଦୁର୍ବଳ ଲାଗୁନାହିଁ? ରକ୍ତ ଦେଲାବେଳେ କାଟିଲା ନାଇଁ ?''

ଦୁହେଁ କହିଲେ – ''ନାଁ ତ।''

ସେ ଦୁହିଁଙ୍କ କଥା ଶୁଣି ମୋର ମନରେ ଶାନ୍ତି ଆସିଲା। ଡାକ୍ତରବାବୁ ସେ ଦୁଇ ବୋତଲ ରକ୍ତ ମୋ ଭାରିଯା ଦେହରେ ଦେଲେ। ଡାକ୍ତର ଲେଖିଦେଇଥିବା ସବୁ ଔଷଧ ଦିଆଗଲା। ଚାହୁଁ ଚାହୁଁ ଦଶଦିନ ଭିତରେ ରୋଗୀ ଅନେକ ଭଲହୋଇଆସିଲା।

## ( ୪ )

ଦିନେ ଡାକ୍ତରବାବୁଙ୍କୁ କହିଲି – ''ଆଜ୍ଞା, ମୋର କେତେଟା କଥା ପଚାରିବାର ଥିଲା।''

ଡାକ୍ତରବାବୁ କହିଲେ – ''ହଉ ପଚାର। ତୁମ ସ୍ତ୍ରୀଙ୍କର ଦେହ କେମିତି ଅଛି ଦେଖୁଛ ?''

ମୁଁ କହିଲି, ''ଆଜ୍ଞା, ଆପଣ ତାଙ୍କୁ ନୂଆ ଜୀବନ ଦେଲେ ବୋଲି କହିବି। ହେଲେ ସେ କାହିଁକି ଏମିତି ଶେତା ପଡ଼ି ଫୁଲିଗଲା ଜାଣିଲି ନାହିଁ। ତା'ଛଡ଼ା ରୋଗ ଲେଉଟିବ ନାହିଁତ ?''

ଡାକ୍ତରବାବୁ କହିଲେ, ''ଅସାବଧାନ ହେଲେ ପୁଣି ସେମିତି ହେଇପାରେ। କୃମି ରୋଗ ହେଇ ତାଙ୍କ ଦେହରୁ ବହୁତ ରକ୍ତ କମିଯାଇଥିଲା। ଦେହରେ ଯେତିକି ରକ୍ତ ରହିବା କଥା ତହିଁରୁ କମିଯାଇଥିଲା। ତେଣୁ ସେ ଶେତା ପଡ଼ିଯାଇଥିଲେ। ଗୋଡ଼ ଫୁଲିଯାଇଥିଲା ଓ ସେ ପେଲିହେଉଥିଲେ। ଦୁଇ ବୋତଲ ରକ୍ତ ଦେବା ପରେ କେମିତି ଠିକ୍ ହେଇଗଲେ ନିଜ ଆଖିରେ ଦେଖିଲ ତ ! ତା'ଛଡ଼ା ସେ ଯେଉଁ ଔଷଧ ଖାଉଚନ୍ତି ସେଥିରେ ଦେହରେ ରକ୍ତ ତିଆରି ହେଇପାରିବ। କୃମି ମାରିବା ପାଇଁ ଅନ୍ୟ ଏକ ଔଷଧ ବି ସେ ଖାଉଚନ୍ତି।''

ମୁଁ ପଚାରିଲି– ''ଆଜ୍ଞା ପ୍ରଥମଦିନ ଆପଣ କହିଥିଲେ ଯେ ଏ କୃମିମାନେ ମଣିଷ ଦେହରୁ ରକ୍ତ ଟାଣି ବଞ୍ଚନ୍ତି। ଏହା କେମିତି ହୁଏ ?''



ଡାକ୍ତରବାବୁ କହିଲେ, ''ତୁମ ସ୍ତ୍ରୀଙ୍କର ଅଙ୍କୁଶ କୃମି ରୋଗ ହେଇଛି। ଏହି କୃମିଗୁଡ଼ାକ ମଣିଷର ଅନ୍ତନଳୀରେ ବସା ବାନ୍ଧି ରହନ୍ତି। ତାପରେ ଅନ୍ତନାଳୀ ଭିତରକୁ ତାଙ୍କର ଅଙ୍କୁଶ ଲଗାଇ ରକ୍ତ ଖାଇଥାଆନ୍ତି।''

ମୁଁ କହିଲି– ''ଆଜ୍ଞା, ସେମାନେ କ'ଣ ଏତେ ରକ୍ତ ଖାଇଯାନ୍ତି ?''

ଡାକ୍ତରବାବୁ କହିଲେ– ''ଶହେଟି ଅଙ୍କୁଶ କୃମି ୧୦ ଦିନରେ

ଗୋଟିଏ ଗିଲାସ ରକ୍ତ ଶୋଷିଦେବେ। ଆମ ଦେହରେ ୨୨ରୁ ୨୫ ଗିଲାସ ଯାଏଁ ରକ୍ତ ଥାଏ। ଏବେ ବୁଝିଲ ତ ସେମାନେ ଆମର କେତେ କ୍ଷତି କରନ୍ତି ?''

ମୁଁ କହିଲି, ''ବୁଝିପାରିଲି ଆଜ୍ଞା। ତେବେ ମଣିଷ ବଞ୍ଚିବ କେମିତି ?''

ଡାକ୍ତରବାବୁ କହିଲେ, ''ହଁ ଠିକ୍ ବୁଝିଲ। କୃମିମାନେ ରକ୍ତ ଟାଣିଚାଲିଥାନ୍ତି। ଦେହ ବି ଲାଗିଥାଏ ରକ୍ତ ତିଆରିକରିବାରେ। ଆମେ ଯେଉଁ ଖାଦ୍ୟ ଖାଉ ସେଥିରୁ ରକ୍ତ ତିଆରିହୁଏ। ସେଇ ରକ୍ତ ଆମର ଦେହସାରା ଖେଳିଯାଏ। ଦେହ ଯେତେ ରକ୍ତ ତିଆରି କରୁଚି, କୃମିମାନେ ଯଦି ତା'ଠାରୁ ଅଧିକ ରକ୍ତ ଖାଇଦିଅନ୍ତି ତେବେ ରୋଗୀ ରକ୍ତହୀନ ହୋଇଯାଏ। ତାପରେ ତୁମ ସ୍ତ୍ରୀଙ୍କ ଭଳି ରୋଗରେ ପଡେ।''

ମୁଁ ପଚାରିଲି, ''ଆଜ୍ଞା, ଏ କୃମିଗୁଡ଼ାକ ତ ଏତେ ରୋଗ କରାନ୍ତି— ଏମାନେ ଦେହକୁ ଆସନ୍ତି କୁଆଡୁ ?''

ଡାକ୍ତରବାବୁ ପଚାରିଲେ, ''ତୁମେ କେଉଁଠାକୁ ଝାଡ଼ା ଯାଅ ?''

ମୁଁ କହିଲି— ''ଗାଁରେ କେତେ ଖୋଲା ଜାଗା ଅଛି— ଯେଉଁଠି ଯେତେବେଳେ ସୁବିଧା ହେଲା ସେଠାକୁ ଯାଉ। କେତେବେଳେ କ୍ଷେତବାଡ଼ିରେ, କେତେବେଳେ ପୋଖରୀ ହୁଡ଼ାରେ, ଆଉ ବେଳେବେଳେ ଗାଁ ପାଖ ନାଳ କୂଳରେ।''

ଡାକ୍ତରବାବୁ କହିଲେ, ''ଏଠି ସେଠି ଝାଡ଼ା ଯିବାଟା ଏଇ ରୋଗର ସବୁଠୁ ବଡ଼ କାରଣ।''

ମୁଁ ତାଟକା ହୋଇ ଚାହିଁ ରହିଲି। ତାପରେ ପଚାରିଲି— ''ଆଜ୍ଞା, ଏହା କେମିତି ହୁଏ ମୁଁ କିଛି ବୁଝିପାରୁନାହିଁ। ଏଡ଼େ

ସାଧାରଣ କଥା — ଅଥଚ ତହିଁରୁ ହେବା ରୋଗ କେଡ଼େ ବିଷମ ।"

ଡାକ୍ତରବାବୁ କହିଲେ — "ତୁମ ସ୍ତ୍ରୀ ମଧ୍ୟ ବାହାର ପଡ଼ିଆକୁ ଝାଡ଼ା ଯାଆନ୍ତି । ସେହି ଜାଗାକୁ ଅନ୍ୟ ଲୋକମାନେ ମଧ୍ୟ ଝାଡ଼ା ଯାଉଥିବେ । ତୁମ ସ୍ତ୍ରୀଙ୍କର ଝାଡ଼ାରେ ଏହି କୃମିର ହଜାର ହଜାର ଡିମ୍ବ ପ୍ରତିଦିନ ପଡୁଥିବେ । ଏହି ଡିମ୍ବଗୁଡ଼ାକ ଉଷୁମ ପଂପସା ମାଟିରେ ବଢ଼ି ଅଂଶେଇ ହୁଅନ୍ତି । ଅଂଶେଇ ସେହି ମାଟିରେ




ଥାଏ । ଖାଲି ପାଦରେ ଯାଉଥିବା ଲୋକର ପାଦର ଚମକୁ ତା'ର ଅଙ୍କୁଶରେ ଫୁଟାଇ ଦେହ ଭିତରକୁ ପଶିଯାଏ । ତୁମ ସ୍ତ୍ରୀ ତ ଖାଲି ପାଦରେ ଚଲାବୁଲା କରନ୍ତି । ସେଇ ଗାଁର ଆଉ କାହାର ଝାଡ଼ାରୁ ବାହାରିଥିବା ଅଙ୍କୁଶ କୃମିର ଅଂଶେଇ ତାଙ୍କ ପାଦ ଦେଇ ଦେହରେ ପଶିଛି । ସେମାନଙ୍କ ସଂଖ୍ୟା ବଢ଼ି ବଢ଼ି ତାଙ୍କୁ ଏମିତି ରୋଗା ଓ ଦୁର୍ବଳ କରିଦେଇଛି ।"

"ଏହା ଛଡ଼ା ବେଳେବେଳେ ଦୂଷିତ ପାଣି ଦେଇ ଏ କୃମି ଦେହ ଭିତରକୁ ଯାଏ। ଆମେ କାକୁଡ଼ି, ଟମାଟୋ, ତରଭୁଜ, ମୂଳା ପ୍ରଭୃତି କଞ୍ଚାରେ ଖାଉ। ଏହି ଫଳରେ ଲାଗି କୃମିର ଅଂଶେଇ ଆମ ପେଟକୁ ଯାଇଥାଏ।"

ଚାଷୀ, ମୂଲିଆ, ବଗିଚାର ମାଳି ଏମାନେ ତ ମାଟିରେ କାମ କରନ୍ତି। ସେମାନଙ୍କ ପାଦ ଓ ହାତର ଚମ ଫୁଟାଇ କୃମିର ଅଂଶେଇ ଦେହ ଭିତରକୁ ଯାଇଥାଏ।"

ମୁଁ କହିଲି "ଆଜ୍ଞା, ଟିକିଏ ଆଗରୁ କହୁଥିଲେ ଯେ କୃମିମାନେ ପେଟର ଅନ୍ତନଳୀରେ ଥା'ନ୍ତି। ଏଗୁଡାକ ସେଠି ପହଞ୍ଚି ପାରନ୍ତି କେମିତି ?"

ଡାକ୍ତରବାବୁ କହିଲେ– "ଚମକୁ ଫୁଟାଇ ଦେହରେ ପଶି ସାରିବା ପରେ ସେମାନେ ଶିରାରେ ପଶନ୍ତି। ଶିରାର ରକ୍ତ ସହିତ ମିଶି ଫୁସ୍‌ଫୁସ୍‌ରେ ପଶନ୍ତି। ସେଠାରୁ ରୋଗୀର ତଣ୍ଟି ବାଟ ଦେଇ ପେଟଭିତରକୁ ଚାଲିଯାଆନ୍ତି। ତାପରେ ଦେହରୁ ରକ୍ତ ଟାଣି ବଢ଼ନ୍ତି ଓ ବଂଶ ବଢ଼ାନ୍ତି।"

ମୁଁ ପଚାରିଲି– "ତେବେ ଏଥିରୁ ରକ୍ଷା ପାଇବା କିପରି ?"

ଡାକ୍ତରବାବୁ ବୁଝାଇଲେ– "ଏଥିପାଇଁ ପ୍ରଥମ କଥା ହେଲା ଆମର ଝାଡ଼ାଯିବା ଅଭ୍ୟାସ ବଦଳାଇବାକୁ ହେବ। ଯେଉଁଠି ସୁବିଧା ହେଲା ସେଠି ଝାଡା ଯିବାକୁ ହେବନାହିଁ। ପାଇଖାନାରେ ଝାଡା ଯିବାକୁ ହେବ। ଯେଉଁ ଦେଶମାନଙ୍କରେ ପରିଷ୍କାର ପାଣି ମିଳୁଛି ଏବଂ ଲୋକମାନେ ପାଇଖାନାରେ ଝାଡ଼ା ଯାଉଚନ୍ତି– ସେଠି ଏ ରୋଗ ନାହିଁ। ଏ ରୋଗ ଆମ ଭାରତ ଭଳି ଗରିବ ଓ ପଛୁଆ ଦେଶମାନଙ୍କରେ ବେଶି ଦେଖାଯାଏ। ଆମର ଗାଁଗହଳର ବେଶି ଭାଗ ଲୋକ ଏ କୃମି ରୋଗରେ ପଡ଼ନ୍ତି।

ଏହି ରୋଗରୁ ରକ୍ଷା ପାଇବାକୁ ହେଲେ ସମସ୍ତେ ନିଜର ପାଇଖାନା କରି ଝାଡ଼ା ଯାଆନ୍ତୁ। ଘରବାହାରେ ଖାଲି ପାଦରେ ନ ଚାଲି ଚପଲ ଲଗାଇ ଚାଲିବା ଭଲ। ଗରିବ ଲୋକମାନେ କାଠର କଠୋଉ ଲଗାଇପାରନ୍ତି।''

ମୁଁ ପଚାରିଲି– ''ଆଜ୍ଞା, ପାଇଖାନା ତିଆରି କଲେ ବହୁତ ପଇସା ପଡ଼ିବ। ଆମେ ମଫସଲର ଲୋକମାନେ ଗରିବ, ଏତେ ଟଙ୍କା ଖର୍ଚ୍ଚ କରିପାରିବୁ ନାହିଁ।''

ଡାକ୍ତରବାବୁ କହିଲେ– ''ପକ୍‌କା ପାଇଖାନା କରିନପାରିଲେ ବରପାଲି ପାଇଖାନା କର। ସେଥିରେ ବେଶି ଖରଚ ହେବ ନାହିଁ।''



[ ବରପାଲି ପାଇଖାନା ]

ମୁଁ କହିଲି– ''ଆଜ୍ଞା, କଥାଟା ମୁଁ ଏବେ ବୁଝିଲି। ହେଲେ ମୁଁ ଏକା ମୋ ଘରେ ଗୋଟେ ପାଇଖାନା କରି ଝାଡ଼ାଗଲେ କ'ଣ ରୋଗ ଭଲ ହେଇଯିବ? ଅନ୍ୟମାନେ ତ ପୁଣି ବାହାରେ ଝାଡ଼ା ଯିବେ। ଆମେମାନେ ସେ ମଳ କୁଦିଲେ ଏହି ରୋଗ ପୁଣି ଥରେ ଆମକୁ ହେବ।''

ଡାକ୍ତରବାବୁ ବୁଝାଇଲେ– "ତୁମେ ପାଇଖାନାଟାଏ କଲେ ଅନ୍ୟମାନେ ତୁମଠାରୁ ଦେଖି କରିବେ। ତୁମେ ଆଜି ମୋଠାରୁ ଯାହା ବୁଝିଲ ତୁମ ଗାଁର ଲୋକଙ୍କୁ ତାହା ବୁଝାଇଦେବ। ମୁଁ ଭାବୁଚି ସେମାନେ ତୁମଠାରୁ ଦେଖି ନିଜର ପାଇଖାନା କରିବେ।"

ମୁଁ କହିଲି, "ଡାକ୍ତରବାବୁ, ଆପଣ ବହୁତ ଜାଣିବା କଥା କହିଲେ। ମୁଁ ସବୁ ମନେରଖିଲି। ଦେହରୁ ରକ୍ତ ନକମିବା ପାଇଁ କ'ଣ ଖାଇବାକୁ ହେବ ସେ କଥା ଏଥର ଟିକିଏ ବତେଇ ଦିଅନ୍ତୁ।"

## ଧାତୁସାର ଖାଦ୍ୟ


ଶାଗ


ଧନିଆ ଶାଗ


ଚାଉଳ


ଛେଳି କଲିଜା


ଗୁଡ଼


ବନ୍ଧାକୋବି


ଡାଲିଜାତୀୟ


ମାଛ


ଡଙ୍କ


ଅଣ୍ଡା

ଡାକ୍ତରବାବୁ କହିଲେ– "ଦେହରେ ରକ୍ତ ତିଆରି ହେବା ପାଇଁ ଲୁହାଧାତୁ ଥିବା ଖାଦ୍ୟ ଦରକାର। ଛେଳି କଲିଜା, ମାଛ, ମାଂସ, ଅଣ୍ଡାରେ ଏହା ଥାଏ। ତା'ଛଡ଼ା ହରଡ଼, ମୁଗ, ବିରି ଆଦି ଡାଲି ଜାତୀୟ ଖାଦ୍ୟରେ ଥାଏ। ଗହମ, ଚାଉଳ, ଗୁଡ଼, ଶାଗ ଓ ପରିବାପତ୍ରରେ ବି ଲୁହାଧାତୁ ରହିଛି। ରକ୍ତ ତିଆରି ପାଇଁ ଏହିଭଳି ଖାଦ୍ୟ ଖାଇବା ଦରକାର।"

## ଜୀବସାର・ଖ





ଶିମ୍ବ


କଦଳୀ


ଆମ୍ବ


ଚିନାବାଦାମ


ଅଣ୍ଡା


କଲିଜା


ଚାଉଳ


ଅଟା

## ଜୀବସାର・ ଗ


ସପୁରୀ


ଟମାଟୋ


ନଡ଼ିଆ


କଦଳୀ


ଅଁଳାକୋଳି


କମଳାଲେମ୍ବୁ


ଲେମ୍ବୁ


କୋବି


ଲଙ୍କାମରିଚ୍

''ତା'ଛଡ଼ା ଜୀବସାର 'ଖ' ଓ 'ଗ' ମଧ୍ୟ ଦେହପାଇଁ ଦରକାର । ଜୀବସାର 'ଖ' ଅଣ୍ଡା, ମାଛ, କଲିଜା ଓ ଦୁଧରେ ଥାଏ । ଚିନାବାଦାମ ଓ ସବୁଜ ପରିବା ପତ୍ରରୁ ମଧ୍ୟ ମିଳେ ।''

''ଜୀବସାର 'ଗ' ଲେମ୍ବୁ, କମଳା, ସପୁରୀ, ନଡ଼ିଆ କଦଳୀ, ଅଁଳାକୋଳି, ଲଙ୍କାମରିଚ, ବନ୍ଧାକୋବି ଆଦିରୁ ମିଳେ । ଏସବୁ ଖାଦ୍ୟ ପ୍ରତିଦିନ ଖାଇଲେ ଦେହରେ ରକ୍ତ ତିଆରି ହେବାରେ ସାହାଯ୍ୟକରେ ।

ଡାକ୍ତର କହିଲେ – ''ତୁମେ ଗାଁକୁ ଯିବା ଆଗରୁ ତୁମ ନିଜର ଝାଡ଼ା ଥରେ ପରୀକ୍ଷା କରାଇନିଅ ।''

ସେଦିନ ମୋର ଝାଡ଼ା ପରୀକ୍ଷା କରାଗଲା । ଜଣାଗଲା, ଅଙ୍କୁଶ କୃମି ମୋ ଦେହରେ ବି ରହିଚି । ମୁଁ ଏବେ ଔଷଧ ଖାଉଚି । ଡାକ୍ତରଙ୍କୁ ଦେଖାଇବାରେ ଡେରିକରିଥିଲେ ମୋତେ ମଧ୍ୟ ମୋ ସ୍ତ୍ରୀର ଦଶା ଭୋଗିବାକୁ ହେଇଥାନ୍ତା । ଆମେ ବହୁତ କଷ୍ଟ ଭୋଗିଲୁ । ସେଥିରୁ ଆମ ଗାଁଲୋକମାନେ ଶିଖିବା ଉଚିତ । ବେଳ ଥାଉଁ ଥାଉଁ ସଭିଏଁ ସାବଧାନ ହୁଅ । ନହେଲେ ଆମ ଭଳି କଷ୍ଟ ପାଇବ ।

## ( ୫ )

ସମସ୍ତେ ବସି ମନଦେଇ ଯଦୁ ମହାନ୍ତିଙ୍କ କଥା ଶୁଣୁଥିଲେ । ଶାମ ଭାଇନା କହିଲେ, ''ଓହୋ, ଏ କୃମିଗୁଡ଼ାକ ଏମିତି ରକ୍ତ ପିଅନ୍ତି ବୋଲି କିଏ ଜାଣିଥିଲା ? ଏମାନଙ୍କଠୁ ଦୂରରେ ରହିବା ଦରକାର ।''

ବାସୁ କହିଲା, ''ସେଇଥିପାଇଁ ଯଦୁଭାଇ ଆଜି ଗାଁକୁ ଆସୁ ଆସୁ ବରପାଲି ପାଇଖାନାଟାଏ କିଣି ଆଣିଚନ୍ତି । କଥାର ଗୁମରଟା ଯାଇ ଏଠି । ମୁଁ ଭାବିଥିଲି ଯଦୁଭାଇ ଏଇ କେତେଟା ଦିନରେ ସହରୀବାବୁ ହେଇଗଲେ ବୋଲି ।''

ଚଇତନ ତା'ର ମନ-ଚଇତନ ଲଗାଇ ସବୁ କଥା ଶୁଣୁଥିଲା । କହିଲା, "ଆଜିଠୁ ନିୟମ କରିବା ଯେ ଗାଁର ସମସ୍ତେ ନିଜର ପାଇଖାନା କରିବା । କେହି ବିଲପଡ଼ିଆରେ ଝାଡ଼ା ଯିବେ ନାହିଁ । ଆମେ ସଭିଏଁ ମିଶି ଆମ ଗାଁର କୂଅ, ପୋଖରୀ ଏବଂ ଗାଁ ପାଖ ନାଳ ସଫା ରଖିବା । ଆମର ସ୍ୱାସ୍ଥ୍ୟ ଆମ ହାତରେ । ସେତିକି ନଜାଣି ରୋଗ ଭୋଗୁଛେ । ଔଷଧରେ ପଇସା ସାରୁଛେ ।"

× × × ×

ଦୁଇଟା ମାସ ଭିତରେ ଗାଁର ଚେହେରା ବଦଳିଗଲା । ସବୁରି ବାଡ଼ିରେ ବରପାଲି ପାଇଖାନା ପଡ଼ିଲା । ଗାଁର ବାଟ ଘାଟ, ବିଲ ପଡ଼ିଆରେ ଝାଡ଼ା ଯିବା ବନ୍ଦହେଲା । ଏବେ ଗାଁ ବାହାରକୁ ଯିବାବେଳେ ମଇଲା ଗନ୍ଧ ନାହିଁ । ତେଣୁ ନାକ ବନ୍ଦକରି ଯିବାକୁ ପଡୁନାହିଁ । ଗାଁର ସଭିଏଁ କୂଅ ପୋଖରୀ ପରିଷ୍କାର ରଖୁଚନ୍ତି । ସମସ୍ତଙ୍କ ମନରେ ଗୋଟିଏ କଥା – ଆମ ଗାଁକୁ ଆମେ ସଫାରଖିବା – ଗାଁର ସମସ୍ତେ ନୀରୋଗ ହେବା ।

## ଡକେଇତ କୃମି ଜିଆ

### ( ୧ )

ଭୋର ସମୟ । ପୂରା ଆଲୁଅ ହେଇନଥାଏ । ବାସୁ ତରତର ହେଇ ଯଦୁ ମହାନ୍ତିଙ୍କ ଘରଆଡ଼େ ଚାଲିଥାଏ । ମହାନ୍ତିଙ୍କ ଘରର କବାଟକୁ ଖଟ୍ ଖଟ୍ କରି ଡାକିଲା, "ହେ ଯଦୁଭାଇ– ଉଠ, ଟିକିଏ କାମ ଅଛି ।"

ଯଦୁ ମହାନ୍ତି ଉଠି କବାଟ ଖୋଲିଲେ । ଦେଖିଲେ – ବାହାରେ ବାସୁ ଠିଆହେଇଚି । ସେ ପଚାରିଲେ, "କିଏ ବାସୁକିରେ ? ଏ ଭୋରଟାରୁ କାହିଁକି ଡାକପକାଇଚୁ ? କ'ଣ ଅସୁବିଧା ହେଲା କି ?"



ବାସୁ କହିଲା, "ଭାଇ, କାଲି ରାତିସାରା ଆମ ଘରେ କେହି ଶୋଇନାହୁଁ । ମୋର ସାତ-ଆଠ ବର୍ଷର ଝିଅ କୁନିଟା କାଲି ରାତି ସାରା କାନ୍ଦୁଚି । ରାତି ଅଧଯାଏ ପେଟ ମୋଡ଼ିହେଲା । କାନ୍ଦି କାନ୍ଦି ଖାଲି ଗଡ଼ିଯାଉଥାଏ ।"

ଯଦୁ ମହାନ୍ତି ଛାନିଆ ହେଲାଭଳି ପଚାରିଲେ, "କ'ଣ କଲୁ ସେଇଠୁ ?"

ବାସୁ କହିଲା, "ଲେମ୍ବୁଲୁଣ ପଣା କରି ପିଇବାକୁ ଦେଲୁ । ସୁଣ୍ଠି ଘୋରି ପାନେ ଦେଲୁ । ହେଲେ କିଛି କାଟୁ କଲାନାହିଁ । ତାପରେ ପିଲାଟା କେତେ ଥର କିଛି ପିତ୍ତ ବାନ୍ତିକଲା । ଶେଷଥରର ବାନ୍ତିରେ ଗୋଟେ ବଡ଼ ଜିଆ ପଡ଼ିଲା ।"

ଯଦୁ ମହାନ୍ତି କହିଲେ, ''କିରେ ଜିଆ ସିନା ଝାଡ଼ାରେ ପଡ଼େ– ବାନ୍ତିରେ କେମିତି ପଡ଼ିଲା ?''

ବାସୁ କହିଲା, ''ମିଛ ମଣୁଚ କି ଭାଇ ? ପିଲାଟା ସତକୁ ସତ ଚାଖଣ୍ଡେ ଲମ୍ବର ଜିଆଟାଏ ବାନ୍ତିକଲା । ପେଟଟା ଦରଜ ହେଇଚି ବୋଲି କହୁଚି । ପିଲାଟା ରାତିକ ଭିତରେ କେତେ ଦୁର୍ବଳ ଦେଖାଗଲାଣି । ମୋର ଆଉ ସାହସ ଅଣ୍ଟୁନି । ଭାବୁଚି ନେଇ ଡାକ୍ତରଙ୍କୁ ଦେଖାଇବି । ମୋ ସାଙ୍ଗରେ ଟିକେ ପୁରୀ ଡାକ୍ତରଖାନାକୁ ଚାଲ ।''

ଯଦୁ ମହାନ୍ତି କହିଲେ, ''ଏମିତି କଥା ? ହଉ ଯିବି । ଅସୁବିଧା ବେଳେ ସାହାଯ୍ୟ କରିବି ନାହିଁତ ଆଉ କେତେବେଳେ କରିବି ?''

ଯଦୁ ମହାନ୍ତି ଏବଂ ବାସୁ ଝିଅକୁ ନେଇ ପୁରୀ ଡାକ୍ତରଖାନାକୁ ଗଲେ । ସେଇ ଡାକ୍ତରବାବୁ ଥିଲେ ଯିଏ ଯଦୁମହାନ୍ତିଙ୍କ ଭାରିଯାକୁ ଭଲକରିଥିଲେ । ଡାକ୍ତରବାବୁ ମହାନ୍ତିଙ୍କୁ ଦେଖି ଚିହ୍ନିପାରିଲେ । ମହାନ୍ତିଏ ଜୁହାର ହେବାରୁ ଡାକ୍ତର ଟିକିଏ ହସିଦେଇ କହିଲେ– ''ପୁଣି କ'ଣ ଅସୁବିଧା ହେଲା ? ଆପଣଙ୍କ ସ୍ତ୍ରୀ କେମିତି ଅଛନ୍ତି ?''

ମହାନ୍ତିଏ କହିଲେ, ''ଆପଣଙ୍କ ଯୋଗୁଁ ସେ ବଞ୍ଚିଗଲା ବାବୁ । ଏବେ ଭଲଅଛି । ବଳ ପାଇଗଲାଣି । ଖୁସିରେ ଅଛି ।''

ଡାକ୍ତର କହିଲେ– ''ତେବେ କୁଆଡ଼େ ଆସିଲ ?''

ଯଦୁ ମହାନ୍ତି କହିଲେ– ''ଆଜ୍ଞା, ଏଇ ପିଲାଟି ମୋର ଝିଆରୀ । କାଲି ରାତିରେ ତା'ର ପେଟ ଖୁବ୍ କାଟିଲା । ବହୁତ ଛାଟିପିଟି ହେଲା । ଶେଷରେ ଗୁଡ଼ାଏ ବାନ୍ତିକଲା । ବାନ୍ତିରେ ଗୋଟେ ବଡ଼ ଜିଆ ମଧ ପଡ଼ିଲା ।''

ଡାକ୍ତରବାବୁ ସବୁ ଶୁଣିସାରି ପିଲାଟିକୁ ପାଖକୁ ଡାକିନେଇ ପରୀକ୍ଷା କଲେ । ପରୀକ୍ଷା କରିସାରି କହିଲେ– ''ପିଲାର ଦେହ ଖୁବ୍ ଦୁର୍ବଳ ହେଇଯାଇଚି । ତା'ର ପେଟରେ ବହୁତ ଜିଆ ଅଛନ୍ତି ।

କେତେଟା ଢିଆ ପେଟର ଅନ୍ତନଳୀର ଏକ ଅଂଶକୁ ବନ୍ଦକରି ରଖିଚନ୍ତି। ସେଇଥିପାଇଁ ତା'ର ପେଟ କାଟିଲା ଆଉ ବାନ୍ତିହେଲା। ଗୋଟାଏ ଢିଆ ଉପର ଆଡ଼କୁ ଉଠିଆସି ପାଟି ବାଟେ ବାନ୍ତି ସହିତ ବାହାରିଆସିଲା। ପିଲାଟିକୁ କିଛି ଦିନ ଡାକ୍ତରଖାନାରେ ରଖି ଚିକିତ୍ସା କରିବାକୁ ହେବ।''

ଡାକ୍ତରବାବୁ ଲେଖିଦେବାରୁ ଝିଅଟିକୁ ଡାକ୍ତରଖାନାରେ ରଖାଗଲା। ତାପରେ ଚିକିତ୍ସା ଆରମ୍ଭ ହେଲା। ଖାଇବାକୁ କେତେ ପ୍ରକାରର ଔଷଧ ଦିଆଗଲା। ଔଷଧ ଖାଇବାର ୫-୬ ଦିନ ଭିତରେ ପିଲାଟି ଭଲ ହେଇ ଆସିଲା।

## ( ୨ )

ପିଲାଟିର ଦେହ ଭଲ ଆଡ଼କୁ ଆସିବା ପରେ ଦିନେ ସଞ୍ଜରେ ବାସୁ ଏବଂ ଯଦୁ ମହାନ୍ତି ଡାକ୍ତରବାବୁଙ୍କ ପାଖକୁ ଗଲେ। ଡାକ୍ତରବାବୁ କହିଲେ— ''ପିଲାତ ଭଲହେଇଆସିଲାଣି— ଆଉ ଅସୁବିଧା କ'ଣ ?''

ଯଦୁ ମହାନ୍ତି କହିଲେ— ''ଆଜ୍ଞା, ଆପଣଙ୍କ ହାତର ଗୁଣ ଅଛି। ସେ ହାତରୁ ଯିଏ ଔଷଧ ଖାଇବ ଭଲହେଇଯିବ। ଆପଣ ଅନୁମତିଦେଲେ ଏ ରୋଗ ବିଷୟରେ ଦି'ଚାରିଟା କଥା ପଚାରନ୍ତି। ଆମେ ତ ମଫସଲି ଲୋକ— କ'ଣ ବା ଜାଣୁ ? କେତେଟା ବିଷୟରେ ବୁଝିବାକୁ ମନ୍‌ହେଉଚି।''

ଡାକ୍ତରବାବୁ କହିଲେ— ''ହଉ ପଚାର।''

ଯଦୁ ମହାନ୍ତି ପଚାରିଲେ, ''ଆଜ୍ଞା, ପିଲାଟାର ପେଟକୁ ଏତେଗୁଡ଼ାଏ ଢିଆ କେଉଁଠୁ ଆସିଲା ?''

ଡାକ୍ତରବାବୁ କହିଲେ – ''ଖାଦ୍ୟ ଆଉ ପାଣି ଦେଇ ଜିଆର ଅଣ୍ଡା ମଣିଷ ପେଟକୁ ଯାଏ। ଆମେ ମୂଳା, କାକୁଡ଼ି, ଲଙ୍କା ଟମାଟୋ ଇତ୍ୟାଦି କେତେକ ଫଳମୂଳକୁ କଞ୍ଚାରେ ଖାଉ। ସେହିପରି ଧନିଆପତ୍ର, ପୋଦନାପତ୍ରକୁ କଞ୍ଚାରେ ଖାଉ। ଏହା ଉପରେ ବେଳେ ବେଳେ ଦୂଷିତ ପାଣି ପଡ଼ିଥାଏ। ବେଳେ ବେଳେ ପିଇବା ପାଣି ମଧ୍ୟ ଦୂଷିତ ହୋଇଥାଏ। ଜିଆର ଅଣ୍ଡା ଏଇ ଖାଦ୍ୟ ଜିନିଷ ଦେଇ ଆମର ପେଟ ଭିତରକୁ ଯାଏ ଓ ସେଠାରେ ବଢ଼େ।''

''ଏଇ ଅଣ୍ଡାରୁ ଜିଆର କୀଟ ବା ଅଂଶେଇ ବାହାରେ। ଅଂଶେଇ ଅନ୍ତନଳୀରୁ ଶିରା ଭିତରକୁ ଯାଏ। ଶିରାର ରକ୍ତଧାର ସହିତ ମିଶି ଆମର ପୁସ୍‌ଫୁସ୍‌କୁ ଯାଏ। ସେଠାରୁ ପୁଣି ପାକସ୍ଥଳୀକୁ ଫେରିଆସେ। ଏହି ଯିବାଆସିବା ଭିତରେ ଜିଆର ଅଂଶେଇଟି ବଢ଼ି ବଡ଼ ଜିଆ ହୋଇଯାଇଥାଏ। ଶୁଣିଲେ ଚମକିଯିବ – ଗୋଟେ ମାଈ ଜିଆ ଦିନକୁ ପ୍ରାୟ ଦୁଇ ଲକ୍ଷ ଯାଏଁ ଅଣ୍ଡା ଦିଏ ଓ ଜିଆ ମଣିଷର ପେଟ ଭିତରେ ପ୍ରାୟ ଛଅମାସରୁ ଦେଢ଼ବର୍ଷ ଯାଏ ବଞ୍ଚିରହେ। ଏଇଥିରୁ ଅନୁମାନ କରିବ ଗୋଟିଏ ଜିଆ ତା'ର ଜୀବନ କାଳ ଭିତରେ କେତେ ଅଣ୍ଡା ଦେଇଥାଏ।''

''ଏଇ ଅଣ୍ଡା ଗୁଡ଼ାକ ରୋଗୀର ଝାଡ଼ାରେ ମିଶି ବାହାରକୁ ଆସେ। ଆମ ଲୋକଙ୍କର ତ ଖୋଲା ଜାଗାରେ, ବିଲ ପଡ଼ିଆରେ ଓ ପୋଖରୀ ହୁଡ଼ାରେ ଝାଡ଼ା ଯିବାର ଖରାପ ଅଭ୍ୟାସ ରହିଛି। ଆଗରୁ କହିଲା ଭଳି – କଞ୍ଚା ଖାଇବା ଫଳମୂଳ ସହିତ ଓ ପିଇବା ପାଣିରେ ମିଶି ଜିଆର ଏହି ଅଣ୍ଡା ପୁଣି କୌଣସି ନିରୋଗ ଲୋକ ଦେହରେ ପଶେ।''

ଯଦୁ ମହାନ୍ତି ପଚାରିଲେ, ''ସବୁ ଜିଆଗୁଡ଼ାକ କ'ଣ ଏମିତି ଲମ୍ବା ଲମ୍ବା ହେଇଥାନ୍ତି? ଏଗୁଡ଼ାକ ମଧ୍ୟ କ'ଣ ଅଙ୍କୁଶ କୃମି ଭଳି ରକ୍ତ ଖାଇ ବଞ୍ଚନ୍ତି ନା କ'ଣ?''

ଡାକ୍ତରବାବୁ କହିଲେ, ''ମାଈ ଜିଆଗୁଡ଼ାକ ପ୍ରାୟ ନଅ ଇଞ୍ଚରୁ ଦେଢ଼ଫୁଟ ଯାଏଁ ଲମ୍ବ ହୁଅନ୍ତି । ଅଣ୍ଡିରା ଜିଆ ଗୁଡ଼ାକ ତା'ଠାରୁ ଟିକିଏ କମ୍ ଲମ୍ବା ହୁଅନ୍ତି । ଏମାନେ ଏତେ ଲମ୍ବା ହୋଇଥିବାରୁ ଅନ୍ତନଳୀ ଭିତରେ କେଉଁଠି ଗୁଡ଼ାଇହେଇଗଲେ ଅନ୍ତନଳୀର ବାଟ ବନ୍ଦହେଇଯାଏ । ତୁମେ ଆଣିଥିବା ଝିଅଟିର ସେଭଳି ହେଇଥିଲା । ଔଷଧ ଖାଇବାରୁ ଜିଆଗୁଡ଼ାକ ଝାଡ଼ାରେ ଖସିପଡ଼ିଲା । ତୁମ ପିଲାର କେତେଟା ଜିଆ ପଡ଼ିଲା କହ ତ ?''



[ ଜିଆମାନେ କିପରି ଅନ୍ତନଳୀ ବନ୍ଦ କରିଛନ୍ତି ତାହା ଗୋଟିଏ ଅନ୍ତନାଳୀ ଚିରି ଦେଖାଇ ଦିଆଯାଇଚି ] ।

ବାସୁ କହିଲା, ''ଆଜ୍ଞା ଚାରି ଥରରେ ୧୪ଟା ଜିଆ ପଡ଼ିଲା ।''

ଡାକ୍ତରବାବୁ କହିଲେ, ''ଜିଆମାନେ ମଣିଷ ଖାଉଥିବା ଖାଦ୍ୟରୁ ଛେନାଜାତୀୟ ଖାଦ୍ୟ ଓ ଭିଟାମିନ୍ ଖାଇଯାନ୍ତି । ଜିଆମାନେ ସେମାନଙ୍କ ପେଟପୂରା ଖାଇସାରିବା ପରେ ଆଉ ଯାହା ଖାଦ୍ୟ ରହେ ତାହା ମଣିଷର କାମରେ ଲାଗେ । ଏମାନେ ଜାଣ ମଣିଷର ଖାଦ୍ୟ ଛଡ଼େଇ ଖାଇଯାନ୍ତି । ସେଥିପାଇଁ ଏମାନଙ୍କୁ 'ଡକେଇତ କୃମି' କୁହାଯାଏ ।''

''ଜିଆମାନେ ଆମ ଦେହର ଖାଦ୍ୟ ଖାଇଦେବାରୁ ଆମ ଦେହ ଦୁର୍ବଳ ହୋଇଯାଏ । ପେଟରେ ବେଳେ ବେଳେ କଷ୍ଟ ହୁଏ । ଜିଆ ଖାଇଦେବାରୁ ଦେହରେ ବିଭିନ୍ନ ଭିଟାମିନ୍‌ର ଅଭାବ ହୁଏ ।

ରକ୍ତ କମିଯାଏ । ହାତ, ପାଦ ଓ ମୁହଁ ଫୁଲିଯାଏ – ଯାହାକୁ ଶୋଥ ରୋଗ କୁହାଯାଏ । ବେଳେ ବେଳେ ଦେହ ସାରା ଫୁଲିଯାଇ କୁଣ୍ଡେଇହୁଏ । ଦେହ, ହାତ ଓ ମୁହଁରେ ଛଉ ଭଳି ଧଳା ଧଳା ଦାଗ ଦେଖାଯାଏ । ଫୁସ୍‌ଫୁସ୍ ଭିତର ଦେଇ ଜିଆର ଅଂଶେଇ



[ ଦୁଇଟି ଜିଆର ଛବି ]

ଯିବା ସମୟରେ ରୋଗୀ ପେଲିହୁଏ । କାଶ କଫ ରୋଗ ମଧ୍ୟ ହୋଇଥାଏ । କେତେକ କୃମି ରୋଗୀ ମାଟି ଖାଇବାକୁ ଭଲପାଇଥାନ୍ତି । ମାଟି ଖାଇବା ପରେ ରୋଗ ଆହୁରି ବଢ଼ିଯାଏ ।''

''ବଡ଼ ମଣିଷଙ୍କ ଅପେକ୍ଷା ପିଲାମାନଙ୍କ ପେଟରେ ଜିଆ ସହଜରେ ହୋଇଥାଏ । ସମୟ ସମୟରେ ଏପରି ପିଲାମାନଙ୍କ ଅବସ୍ଥା ଖରାପ ହୋଇଯାଏ । ଖାଦ୍ୟ ଅଭାବରୁ ଯେଉଁ ସବୁ ରୋଗ ହୁଏ ସେ ସବୁ ରୋଗ ପିଲାଙ୍କୁ ଚଞ୍ଚଳ ହୋଇଥାଏ । ଦେହ ଦୁର୍ବଳ

ହୋଇଯିବାରୁ ପିଲାର ପେଟ ଫୁଲିବା ଭଳି ଦେଖାଯାଏ। ଆଖି ପଶିଯାଏ। ଗୋଡ଼ ଫୁଲିଯାଏ। ପିଲା ଖେଳା ବୁଲା ନକରି ମାନ୍ଦା ହୋଇ ବସିରହେ। ପିଲା ବେଶି ଖାଇଥାଏ, କିନ୍ତୁ ଯେତେ ଖାଇଲେ ମଧ୍ୟ ଦେହ ଦୁର୍ବଳ ରହେ। ଜିଆ ପେଟ ଭିତରେ ଗୁଡ଼େଇ ହୋଇ ରହିଗଲେ ଅନ୍ତନଳୀର ବାଟ ବନ୍ଦ ହୋଇ ବାନ୍ତି ହୋଇଥାଏ। ଏହା ଫଳରେ ରୋଗୀର ଅବସ୍ଥା ବେଳେବେଳେ ଗୁରୁତର ହୋଇପଡ଼େ।''

## (୪)

ଯଦୁ ମହାନ୍ତି କହିଲେ– ''ଡାକ୍ତରବାବୁ, କ'ଣ କଲେ ଏ ଜିଆଙ୍କ ଦାଉରୁ ରକ୍ଷା ମିଳିବ ?''

ଡାକ୍ତର କହିଲେ, ''ଖୋଲା ପଡ଼ିଆ, ବିଲବାଡ଼ି, ପୋଖରୀ ଓ ନାଳ ହୁଡ଼ାରେ ଝାଡ଼ା ଯିବା ଫଳରେ ନାନା ପ୍ରକାର କୃମିରୋଗ ହେଉଛି– ଏ କଥା ତୁମକୁ ଗତଥର କହିଥିଲି। ପାଇଖାନା ଯିବା ବିଷୟରେ ଯାହା ଯାହା କହିଥିଲି ସେ ସବୁ ପାଳନ କରିବ। ଗାଁର ସମସ୍ତେ ପାଇଖାନା ବ୍ୟବହାର କଲେ ତୁମ ଗାଁରେ କୃମି ରୋଗ ଆଉ ରହିବନି। ଯେଉଁମାନେ ପାଇଖାନା କରିପାରିବେନି, ସେମାନେ ଘର ବାଡ଼ିରେ ଗୋଟାଏ ଗହୀରିଆ ଗାତ କରି ସେଥିରେ ଝାଡ଼ା ଯାଇ ମାଟି ଘୋଡ଼ାଇଦେଲେ ଚଳିବ। ପିଲାମାନଙ୍କର ଝାଡ଼ାକୁ ମଧ୍ୟ ମାଟି ପକାଇ ପୋତିଦେଉଥିବ।''

ଯେଉଁ ଫଳ ମୂଳକୁ କଞ୍ଚା ଖିଆଯାଏ ତାହାକୁ ଗରମପାଣିରେ ଧୋଇ ଖାଇବ।

''ମାଟିଝାଟିରେ କାମ କରୁଥିବା ଲୋକମାନେ କାମରୁ ଫେରିଆସି ସାବୁନ୍‌ରେ ହାତ ପାଦ ଧୋଇବେ।''

"ପିଇବା ପାଣିରେ ମଧ୍ୟ ଜିଆର ଅଣ୍ଡା ଥାଇପାରନ୍ତି । ପାଣିରେ ଆହୁରି ନାନା ପ୍ରକାର ରୋଗର ଜୀବାଣୁ ବି ଥାନ୍ତି । ଏଣୁ ପାଣିକୁ ଫୁଟାଇ ଛାଣି ପିଇବା ଭଲ । ସରକାରଙ୍କର ସ୍ୱାସ୍ଥ୍ୟବିଭାଗ ନିରୋଗ ରହିବାରେ ଲୋକଙ୍କୁ ସାହାଯ୍ୟ କରନ୍ତି । ସେସମାନଙ୍କୁ ଡାକି ଗାଁର କୂଅ ପୋଖରୀରେ ମଝିରେ ମଝିରେ ବ୍ଲିଚିଂ ପାଉଡ଼ର ପକାଇବ । ତାହା କଲେ ପାଣି ପରିଷ୍କାର ରହିବ ।"

ଯଦୁମହାନ୍ତି ଓ ବାସୁ ଡାକ୍ତରଙ୍କର ଉପଦେଶ ଗୁଡ଼ିକ ମନଦେଇ ଶୁଣିଲେ । ତା'ପରେ ତାଙ୍କୁ ଜୁହାର ହୋଇ ଝିଅକୁ ନେଇ ଡାକ୍ତରଖାନା ଛାଡ଼ିଲେ ।

## ଦଶିପୋକ

### ( ୧ )

ଗୋରୁବାହୁଡା ବେଳ । ଗୋପାଳ ଦାସେ ପାନବଗିଚାର କାମ ସାରି ଘରକୁ ଫେରୁଥାନ୍ତି । ବାଟରେ ଦେଖାହେଲେ ଯଦୁ ମହାନ୍ତି । ଯଦୁ ମହାନ୍ତି ଜୁହାର ହେଇ ପଚାରିଲେ, "ଭାଇନା, ଭଲଅଛତ ?"

ଗୋପାଳ ଦାସେ କହିଲେ– "ଭଲ ଆଉ କ'ଣ । ଆମର କି ଖରାପ ଦଶା ପଡ଼ିଚି ଯେ ବଉଁଶଯାକୁ ରାତିରେ ଦଶିପୋକ କାମୁଡ଼ି ଦିକ୍‌ଦାର କଲେଣି । ଯେତେ ହଳଦୀ ଗୁଣ୍ଡ ଖାଇଲେ ବି ମରୁନ'ହାନ୍ତି । ଡାକ୍ତରଙ୍କୁ ଟିକିଏ ପଚାରିବାକୁ ମନ । ତୁମେ ଟିକିଏ ସାଥିରେ ଗଲେ ପୁରୀର ଡାକ୍ତରବାବୁଙ୍କୁ ଦେଖାନ୍ତି ।"

ଯଦୁ ମହାନ୍ତି କହିଲେ, ''ହଉ ଯିବା। ଡାକ୍ତରଙ୍କୁ ଦେଖାକରିବା। ମୋର ବି ପୁରୀରୁ କିଛି ସାର କିଣି ଆଣିବାକୁ ଥିଲା। ଡାକ୍ତରଖାନା କାମ ସାରି ମୋ କାମ କରି ଫେରିବି।''

ପରଦିନ ସକାଳୁ ଗୋପାଳ ଦାସ ଓ ଯଦୁ ମହାନ୍ତି ପୁରୀ ବାହାରିଲେ। ସକାଳ ଦଶଟାରେ ପୁରୀରେ ପହଞ୍ଚି ଡାକ୍ତରଖାନାକୁ ଗଲେ। ଯଦୁ ମହାନ୍ତି ଦେଖିଲେ ତାଙ୍କର ପରିଚିତ ସେଇ ଡାକ୍ତରବାବୁ ଅଛନ୍ତି।

ଯଦୁ ମହାନ୍ତି ଡାକ୍ତରଙ୍କୁ ଜୁହାର ହେଇ କହିଲେ – ''ଡାକ୍ତରବାବୁ, ଏ ଆମ ଗାଁର ଭାଇନା। ଯାଙ୍କର ବଉଁଶଯାକୁ ଦଶିପୋକ ହେଇଚି। ଆପଣଙ୍କୁ ଟିକିଏ ପଚାରି ଔଷଧ ନେବାକୁ ଆସିଚନ୍ତି।''

ଡାକ୍ତରବାବୁ ଦାସଙ୍କୁ ପଚାରିଲେ, ''କ'ଣ ସବୁ ଅସୁବିଧା ହେଉଚି କହନ୍ତୁ ତ।''

ଦାସେ କହିଲେ, ''ଆଜ୍ଞା, ରାତି ଅଧବେଳକୁ ଦଶିପୋକ ଗୁଡ଼ାକ ମଳଦ୍ୱାରକୁ କାମୁଡ଼ି ପକାଉଚନ୍ତି। କୁଣ୍ଡାଇ କୁଣ୍ଡାଇ ଅଥୟ ଲାଗୁଚି। ମଳଦ୍ୱାର ଚାରିପଟେ ଘା' ହେଇଗଲାଣି।''

ଡାକ୍ତରବାବୁ ପଚାରିଲେ– ''ଆଚ୍ଛା, ପିଲାମାନଙ୍କର କ'ଣ ଅସୁବିଧା ହେଉଚି ?''

ଦାସେ କହିଲେ– ''ପିଲା ଦି'ଟା ଖାଇଦେଇ ସଞ୍ଜବେଳୁତ ଶୋଇପଡୁଚନ୍ତି– ରାତି ଦଶଟା ଏଗାରଟାବେଳକୁ ପାଟିକରି କାନ୍ଦି ଉଠୁଛନ୍ତି। ମଳଦ୍ୱାର, ପିଚା କୁଣ୍ଡାଇ ହେଉଚନ୍ତି। ମଳଦ୍ୱାର ଥରେ ଦେଖିଥିଲୁ– ପୋକ ସାଲୁବାଲୁ ହେଉଥିଲେ।''

ଡାକ୍ତରବାବୁ ପଚାରିଲେ– ''ତୁମ ସ୍ତ୍ରୀଙ୍କର ବି ଦଶିପୋକ ହେଇଥିବ। ତାଙ୍କର କ'ଣ ସବୁ ଅସୁବିଧା ହେଉଚି ?''

ଦାସେ କହିଲେ– ''ସିଏବି ଆଜ୍ଞା କଷ୍ଟ ପାଉଚି। ତା'ର

ବି ମଳଦ୍ୱାର ପରିସ୍ରାଦ୍ୱାର ଆଦି କୁଣ୍ଡାଇ ହେଉଚି । ପରିସ୍ରା କଲାବେଳେ ପୋଡୁଚି ।''

ଡାକ୍ତରବାବୁ ସବୁ ଶୁଣିସାରି କହିଲେ, ''ସାରା ପରିବାରଟିକୁ ଦଶିପୋକ ହେଇଯାଇଚି । ଔଷଧ ଲେଖିଦେଉଚି, ସମସ୍ତେ ଏକାବେଳକେ ଖାଇବ । ଲୁଗାପଟା ସଫା ରଖିବ । ସମସ୍ତଙ୍କର ନଖ କାଟିଦେବ । ଖାଇବା ଆଗରୁ ହାତ ପରିଷ୍କାର କରି ଧୋଇବ । ଏହା କଲେ ସମସ୍ତେ ଭଲହେଇଯିବ ।''

## ( ୨ )

ଯଦୁ ମହାନ୍ତି ସବୁ ଶୁଣୁଥିଲେ । ପଚାରିଲେ, ''ଆଜ୍ଞା, ଆମେ ଗାଉଁଲି ଲୋକମାନେ ଭାବୁ ଯେ ବେଶି ମିଠା, ଚିନି, ନବାତ, ଗୁଡ଼ ଆଦି ଖାଇଲେ ଦଶିପୋକ ହୁଅନ୍ତି । ଏହା କ'ଣ ସତ ?''



ଡାକ୍ତରବାବୁ କହିଲେ– ''ମହାନ୍ତିବାବୁ, ତୁମ ସ୍ତ୍ରୀଙ୍କୁ ଅଙ୍କୁଶ କୃମି ରୋଗ ହୋଇଥିଲା। କିଛିଦିନ ତଳେ ଗୋଟିଏ ଝିଅକୁ ନେଇ ଆସିଥିଲ, ତା'ର ଢିଆ ହେଇଥିଲା। ଏଇ ଯେ ଦାସଙ୍କୁ ଆଣିଚ ଯାଙ୍କର ଦଶିପୋକ ହେଇଚି। ଏସବୁ କୃମିରୋଗର ନାନ ରୂପ। ମିଠା ଖାଇବା ଏହାର କାରଣ ନୁହେଁ। ଢିଆଭଳି ଏହି କୃମିର ଅଣ୍ଡା ଦୂଷିତ ଖାଦ୍ୟ ଏବଂ ପାଣି ସହିତ ମିଶି ପେଟକୁ ଯାଇଥାଏ। ଥରେ ଏ ରୋଗ ଆରମ୍ଭ ହେଇଗଲେ ସହଜରେ ଛାଡେନାହିଁ। କାରଣ ମାଈ କୃମି ମଳଦ୍ୱାର ପାଖରେ ଅଣ୍ଡା ଦିଏ। ସେ ସ୍ଥାନ କୁଣ୍ଡେଇ ହୁଏ। କୁଣ୍ଡାଇବା ସମୟରେ ନଖସନ୍ଧିରେ ଏବଂ ହାତରେ କୃମିର ଅଣ୍ଡା ଲାଗି ରହିଯାଆନ୍ତି। ଖାଇବା ସମୟରେ ସେହି ଅଣ୍ଡା ଖାଦ୍ୟସହ ପେଟକୁ ଯାଇ ନିଜର ବଂଶ ବଢ଼ାଇଥାନ୍ତି।''

ଯଦୁ ମହାନ୍ତି ପଚାରିଲେ, ''ଆଜ୍ଞା, ଏ ଦଶିପୋକ ଦାଉରୁ ରକ୍ଷା ପାଇବାର ଉପାୟ କ'ଣ ?''

ଡାକ୍ତରବାବୁ କହିଲେ, ''ଏକ ସମୟରେ ଗୋଟିଏ ପରିବାରର ପ୍ରାୟ ସମସ୍ତଙ୍କୁ ଏଇ କୃମିରୋଗ ହୋଇଥାଏ। ତେଣୁ ଘରର ସମସ୍ତେ ଏକ ସମୟରେ ପେଟରୁ ଦଶିପୋକ ମାରିବାକୁ ଔଷଧ ଖାଇଦେବା ଭଲ। ଘରର ସମସ୍ତଙ୍କର ପିନ୍ଧା ଲୁଗାପଟା ଫୁଟା ପାଣିରେ ସଫା କରିବ। ଶେଯ, ଚାଦର ଓ ଲୁଗା ଖରାରେ ଶୁଖାଇବ। ସମସ୍ତେ ଗରମ ଖାଦ୍ୟ ଖାଇବ ଓ ପାଣି ଫୁଟାଇ ଛାଣି ପିଇବ। ହାତର ନଖ କାଟି ସଫା ରଖିବ। ଖାଇବା ପୂର୍ବରୁ ହାତକୁ ପରିଷ୍କାର କରି ଧୋଇବ। ତାହେଲେ ଏ ରୋଗ ଭଲହେବ।''

ଯଦୁ ମହାନ୍ତି ଏବଂ ଗୋପାଳ ଦାସେ ଡାକ୍ତରବାବୁଙ୍କୁ ଜୁହାର ହେଲେ। ତା'ପରେ ଔଷଧପତ୍ର କିଣି ଗାଁକୁ ଫେରିଲେ। ଦାସଙ୍କ ଘରର ସମସ୍ତେ ଏକ ସମୟରେ କୃମି ମାରିବା ଔଷଧ ଖାଇଲେ। ଡାକ୍ତର କହିବାଭଳି ପରିଷ୍କାର ରହିଲେ। କିଛି ଦିନ ଭିତରେ ସେମାନେ ସମସ୍ତେ ଭଲହେଇଗଲେ। □□□